# ନୀତିପରାଗ ।

( ପ୍ରଥମ ଭାଗ )

ଶ୍ରୀ ନୀଳମଣି ବିଦ୍ୟାରତ୍ନ

କର୍ତ୍ତୃକ

ସଙ୍କଳିତ ।

ବାମଣ୍ଡା

—※—

କଟକ ପ୍ରିଣ୍ଟିଂ କମ୍ପାନିଙ୍କ ପ୍ରେସରେ

ପ୍ରଥମବାର ମୁଦ୍ରିତ ।

୧୯୦୧ ଖ୍ରୀ

CUTTACK,

Printed by the Cuttack Printing

Company Limited,

1901

# ଉତ୍ସର୍ଗପତ୍ର ।

ଚୌହାନକୁଳଭୂଷଣ ପରମମାନ୍ୟବର, ପ୍ରଜା-ବତ୍ସଳ, ସହୃଦୟଶେଖର ଖଡ଼ିଆଳସ୍ଥ-ଅଧୀଶ୍ୱର

**ଶ୍ରୀଯୁକ୍ତ ରାଜା ବ୍ରଜରାଜ ସିଂହ ଦେବ**

ମହୋଦୟ କରକମଳେଷୁ ।

ବିନୟ ପୁରଃସର ନିବେଦନମିଦଂ

ଶ୍ରୀମନ୍ନରପତେ ! ଶ୍ରୀଷ୍ମ ମଧ୍ୟପ୍ରଦେଶର ନଇ-ପଛ ହୋଇ ମଧ୍ୟ ଉତ୍କଳଦେଶରେ ଦ୍ୱିତୀୟ ଉପେନ୍ଦ୍ରରୂପେ ସୁପରିଚିତ । ସଂସ୍କୃତାକାର କହି ଯାଇଅଛନ୍ତି,—

"ଦୁଷ୍ଟସ୍ୟ ଦଣ୍ଡଃ, ସୁଜନସ୍ୟ ପୂଜା,
ନ୍ୟାୟେନ କୋଷସ୍ୟ ଚ ସଂପ୍ରବୃଦ୍ଧିଃ,
ଅପକ୍ଷପାତୋଽର୍ଥିଷୁ ରାଷ୍ଟ୍ରରକ୍ଷା,
ପଞ୍ଚୈବ ଯଜ୍ଞାଃ କଥିତା ନୃପାଣାଂ ।"

"ଦୁଷ୍ଟ ଦମନ, ଶିଷ୍ଟ ପାଳନ, ନ୍ୟାୟାନୁସାରେ ଧନ ସଞ୍ଚୟ, ବିଚାରାର୍ଥୀମାନଙ୍କ ପ୍ରତି ଅପକ୍ଷପାତତା

ଏବଂ ସର୍ବତୋଭାବରେ ରାଜ୍ୟରକ୍ଷା କରିବା, ଏହି ପାଞ୍ଚଟି ରାଜାମାନଙ୍କର ଯଜ୍ଞ ବୋଲି କଥିତ ହୁଏ ।” ସୁଖର ବିଷୟ, ଶ୍ରୀଯୁକ୍ତ ଏହି ପଞ୍ଚଯଜ୍ଞର ଜଣେ ଦେଶବିଖ୍ୟାତ ଯାଜକ । ଅତୀତ ଦୁର୍ଭିକ୍ଷ କାଳମାନଙ୍କରେ ଶ୍ରୀଯୁକ୍ତ ଅଶ୍ରାନ୍ତ ପରିଶ୍ରମ ଏବଂ ଅକାତରରେ ଅଜସ୍ରବ୍ୟୟ ସ୍ୱୀକାର କରି ଯେଉଁ ସୁବର୍ଣ୍ଣମୟୀ କୀର୍ତ୍ତି ଲାଭ କରିଅଛନ୍ତି, ଭାରତର ରାଜରାଜେଶ୍ୱରୀ ଭିକ୍ଟୋରିୟା ଦେବୀଙ୍କଦ୍ୱାରା ସମ୍ମାନରେ ପ୍ରଦତ୍ତ କୈସର-ଇ-ହିନ୍ଦ ସ୍ୱର୍ଣ୍ଣପଦକ ତହିଁର ସୁନ୍ଦର ନିଦର୍ଶନ ସ୍ଥଳ । ସହୃଦୟତା ଏବଂ ପ୍ରଜାବତ୍ସଳତାର ଏପରି ନିଦର୍ଶନ ବୃଟିଶର ବିରଳ; ଦାରିଦ୍ର୍ୟ ନିପୀଡିତ ଉତ୍କଳରେ ଅତି ବିରଳ । ଏହି କାରଣରୁ, ବିଶେଷତଃ ଶ୍ରୀଯୁକ୍ତ ମୋ ପ୍ରତି ଏବଂ ମୋହର ସମ୍ପାଦିତ "ଉତ୍କଳ ମଧୁପ” ପ୍ରତି ଆଶାତୀତ ଆନୁକୂଲ୍ୟ ପ୍ରକାଶ କରିଥିବାରୁ ଶ୍ରୀଯୁକ୍ତଙ୍କ ପ୍ରତି ମୋହୋର ଅନ୍ତରର ଭକ୍ତି–ପ୍ରୀତିର ସଞ୍ଚାର ହୋଇଅଛି । ବର୍ତ୍ତମାନ୍ ସେହି ଭକ୍ତି-ପ୍ରୀତି ଏବଂ କୃତଜ୍ଞତାର ନିଦର୍ଶନ-ସ୍ୱରୂପ ଏହି "ନୀତିପରାଗ” ପୁସ୍ତକ ଖଣ୍ଡି ଶ୍ରୀଯୁକ୍ତଙ୍କ

ବିମଳ କରକମଳରେ ଉପହାର ପ୍ରଦାନ କରୁଅଛି । ଆଶା କରେଁ ଶ୍ରୀଯୁକ୍ତଙ୍କ ତୁଲ୍ୟ ଗୁଣଗ୍ରାହୀ, ନୀତିକୁଶଳ ନରପତିଙ୍କ ନିକଟରେ, ଏ ପୁସ୍ତକ ଖଣ୍ଡି କ୍ଷୁଦ୍ର ହୋଇ ମଧ୍ୟ ମୂଲ୍ୟବାନ୍ ବିବେଚିତ ହେବ । ନିବେଦନମିତି । ୧୫।୭।୧୯୦୧ ଖ୍ରୀଃ

ଶ୍ରୀଯୁକ୍ତଙ୍କ ଅନୁଗୃହୀତ

ଶ୍ରୀ ନୀଳମଣି ବିଦ୍ୟାରତ୍ନ ।



# ନୀତିପରାଗ ।

ସାହସ, ଉତ୍ସାହ, ଆୟୁ, ଆନନ୍ଦ ନିର୍ମଳ,
ବଳ, ବୁଦ୍ଧି ଏ ସମସ୍ତ ସୁଚିନ୍ତାର ଫଳ ।

ପାଷାଣେ ଶସ୍ୟ ବପନ ନିଷ୍ଫଳ ଯେସନ,
ଦୁଶ୍ଚିନ୍ତାରେ କାଳକ୍ଷୟ ବିଫଳ ତେସନ ।

ଦୁଶ୍ଚିନ୍ତା, କୁଚିନ୍ତା ଦୁଇ ଯମଜଭଗିନୀ,
ପାପ ଆଉ ନରକର ପଥପ୍ରଦର୍ଶିନୀ ।

କଦେହୁ ମନନମ୍ଭଣ, ଉତ୍ସାହ ବିହୀନ,
ନ ରହିବ ଦୁଃଖ ନିଶା ଆସୁଅଛି ଦିନ ।

ଯତ୍ନ ବିନା ଧନ, ବିନା ଶ୍ରମେ ପୁରସ୍କାର,
ଦୁଃଖ ବିନା ସୁଖ ନୁହେ, ଇଚ୍ଛା ବିଧାତାର ।

ଧନେ ମାନ ଧସେ ନାହିଁ, ଜ୍ଞାନେ ନିରନ୍ତରେ,
ନ ଜନ୍ମେ ଏପରି କେହି ମାନବର ଘରେ ।

୨ ନୀତିପଦ୍ୟ ।

ଆପଣାର ଅବସ୍ଥାରେ ଅସୁଖୀ ଯେ ଜନ,
ଧନେ ଜନେ କେବେ ତାର ନ ଘୁଞ୍ଚେ ବେଦନ।

ରୋଗର ଔଷଧ ଅଛି ବାହାରେ ବହୁତ,
ଅଶାନ୍ତିର ପ୍ରତିକାର ହୃଦ ଅଭ୍ୟନ୍ତର ।

ନିର୍ଝରଣୀ ଅବିରତ କରେ ଜଳ ଦାନ,
ନ ଦେଖେ ସାଧୁ ଅସାଧୁ କିଏ କଲା ପାନ ।

ହୀରକ ସଙ୍ଗତେ କାଚ ଥିଲେହେଁ ଜଡ଼ିତ,
କାଚପ୍ରଭ କେହୁ କେବେ ହୁଏ କି ଶୋଭିତ ?

ଆପଣାର ହିତେ ନାହିଁ ଯାର ପ୍ରଣିଧାନ,
ସହାୟ ସମ୍ପଦେ ତାର କି ହେବ କଲ୍ୟାଣ ?

କାର୍ଯ୍ୟ କରି ଫଳଲାଭେ ଧୈର୍ଯ୍ୟ ନାହିଁ ଯାର,
ଯେତେ କଷ୍ଟ ଅନୁଷ୍ଠାନ ବିଡ଼ମ୍ବନା ତାର ।

ମରିଚ, ବାର୍ତ୍ତାକୀ ଫଳେ ମାସ ଦୁଇ ପରେ,
ତାଳ ନାରିକେଳ ଫଳେ ଯୁଗ ଯୁଗାନ୍ତରେ ।

ଅନୁଷ୍ଠାନ ଅନୁରୂପେ ଫଳେ ସିନା ଫଳ,
ରୋପିଲେ କେନ୍ଦୁଳୀତରୁ ଫଳେ କି ଶ୍ରୀଫଳ ?

ମଣି ମୁକ୍ତା ଚିହ୍ନିବାର ଜହୁର ସୁଲଭ,
ମହାଜନ ଚିହ୍ନିବାର ଜହୁର ଦୁର୍ଲ୍ଲଭ ।

ହୁଏତ ଚରଣେ ଆଜ ଦଳୁଥିଛ ଯାରେ,
ସେବିବ ତାହାର ପଦ ଦିନ ଦୁଇ ପରେ ।

ନିଜ ବୋଝ ବୋହୁଥାନ୍ତି ନରେ ନିରନ୍ତର,
ବହନେ ପରର ମୂଟି ଗାତ୍ରେ ଅସେ ଜ୍ୱର ।

ସ୍ୱାର୍ଥ ବଢ଼େ ଧନ, ମାନ, ନାମର ପସାର,
ଦେବାକୁ ସ୍ୱଦେଶପ୍ରେମୀ ଅପତ୍ତି କାହାର ?

ଦେଉଥିଛ କେତେ ବଳ ଯଶର ଚରଣେ,
ଏ କିନ୍ତୁ ଈଶ୍ୱର ପୂଜା ଏହା ଭଣ ମନେ ।

ସହସ୍ର ଥାଳୀର ସେବା ହୁଏ ଯହ ଲଭ,
ତଥାପି ନ ପୂର୍ଣ୍ଣେ କିନ୍ତୁ ମାଙ୍କାର ଅଙ୍ଗନ ।

କୃତଜ୍ଞତା ହୃଦୟର ଅଲଙ୍କାର ଯାର,
ନୀଚତା ବୋଲିଣ ବସ୍ତୁ ନ ଥାଏ ତାହାର ।

ଅନଳରେ ଦଗ୍ଧ ହୁଏ ଯଦ୍ୟପି ଚନ୍ଦନ,
ତଥାପି ସୁଗନ୍ଧ ତାର କରେ ବିତରଣ ।

ପ୍ରତ୍ୟେକ ନିଶ୍ୱାସେ ପାଉଁ ମୃତ୍ୟୁର ଖବର,
ଶୁଣି ନ ଶୁଣଇ ତାହା, ମାନବ-ପାମର ।

ପାଶେ ପାଇ କରୁଅଛ ଯାହାର ଅନାଦର,
ଦେବଙ୍କୁ ସ୍ଥାନାନ୍ତରେ ପୂଜଇ ସେ ନର ।

ହାତୀ ଘୋଡ଼ା ରାଜ୍ୟ ଧନ ସମସ୍ତ ନଶ୍ୱର,
ଅକ୍ଷର ସମ୍ବନ୍ଧ କୀର୍ତ୍ତି ଏକା ସ୍ଥିରତର ।

ଦୁଃଖ ପଛେ ମହତଙ୍କ ପ୍ରସାଦଭାଜନ,
ନରର କ୍ଷୁଦ୍ରତା କେହୁ ରଖିବ ସ୍ମରଣ ।

କ୍ଷୁଦ୍ର ଯଦି ବଡ଼ ହୋଇ ପାଏ ଅଧିକାର,
ସ୍ୱଭାବ ତାକୁ ଆଣଇ କ୍ଷୁଦ୍ରତା ତାହାର ।

ସ୍ୱର୍ଣ୍ଣର ପରୀକ୍ଷା ହୁଏ ଅନଳେ ପାଷାଣେ,
ନରର ପରୀକ୍ଷା ହୁଏ ବିପଦର ଦିନେ ।

ମୂର୍ଖସ୍ୟ ବାସନ ଥିଲେ ରାଜସଦନରେ,
ହିରଣ୍ମୟ ପାତ୍ର ଭ୍ରମ ଜନ୍ମାଏ ମନରେ ।

ଛାଡ଼ି ଜପ, ତପ, ମାଳା, ଉପାସ, ଅର୍ଚ୍ଚନା,
ପ୍ରାଣପଣେ ଦୂର କର ହୃଦ-ଆବର୍ଜନା ।

ଏହି ରକ୍ତ, ଏହି ମାଂସ, ଏହି ଅସ୍ଥିମଜ୍ଜ,
ଗ୍ରାସିଅଛି କେତେ ଦେହ ଶମନ ନିର୍ଦ୍ଦୟ ।

ତୈଳସହ ମିଶେ ତୈଳ, ଜଳେ ମିଶେ ଜଳ,
ସାଧୁସହ ମିଶେ ସାଧୁ, ଖଳସହ ଖଳ ।

ଯୁକ୍ତି ଅନୁସାରେ ତର୍କ କରିବ ସକଳ,
ଦ୍ୱେଷ, ଈର୍ଷା, ତିରସ୍କାର କର ବିସର୍ଜନ ।

ସଂଯତ ହୋଇଣ କର ସ୍ୱକୀୟ ଶାସନ,
ସହଜେ ଶାସିତ ହେବେ ତେବେ ସର୍ବଜନ ।

ବୁଦ୍ଧିର ଉତ୍କର୍ଷ ଲାଭେ ଥାଏ ଯଦି ମନ;
ନିପୁଣ ଚିନ୍ତାର ସଙ୍ଗେ କର ଅଧ୍ୟୟନ ।

ମାତା ଯଦି ପୁତ୍ରେ କରେ କଠୋର ପ୍ରହାର,
ତଥାପି ସେ କାନ୍ଦି ଧରେ ଅଞ୍ଚଳ ମାତାର ।

କାଲି ଥିଲା ଅଭିଳାଷ ହେବାକୁ ଅମର,
ଆଜି ଦେଖ ଅଦୃଷ୍ଟତ୍ୟା ସାଙ୍ଗେ ତମୂର ।

ଧର୍ମହିଁ ଧର୍ମର ବଳ ସୁଖ ଶାନ୍ତି ଦ୍ୱାର,
ସାଧୁତାହିଁ ସାଧୁତାର ପୂର୍ଣ୍ଣ ପୁରସ୍କାର ।

ପ୍ରତିବାସୀ ପ୍ରତି କରେ ଯେ ଜନ ବଞ୍ଚନା,
ପଶ୍ଚାତେ ସେ କରେ ନିଜ ଆତ୍ମପ୍ରତାରଣା ।

ଈଶ୍ୱର ମହିମା ଚିନ୍ତା କରିବ ଯେତେକ,
ନିଜର କ୍ଷୁଦ୍ରତା ବୋଧ ଜନ୍ମିବ ତେତେକ ।

କୁପ୍ରଥା ଅନୁମୋଦନ କରଇ ଯେ ଜନ,
ପରିଣାମେ ହୁଏ ତାର ଚରିତ୍ର ସ୍ଖଳନ ।

ସ୍ୱଭାବରେ ଶାନ୍ତି ପୁଣି ଘୋର ପ୍ରଭଞ୍ଜନ,
ଠେସ ଦେଇ କେତେକାଳ ରହିବ ସଦନ ।

ଧରାର ମାନବ ଯଦି ହୁଅନ୍ତା ଅମର,
ଜଳନ୍ତା ଯାତନାନଳେ ତେବେ ନିରନ୍ତର ।

ବିନ୍ଦୁ ବିନ୍ଦୁ ଜଳଯୋଗେ ଅସୀମ ସାଗର,
ପଳ ଅନୁପଳ ମେଳି କଳ୍ପ କଳ୍ପାନ୍ତର ।

ମହତ ଉଦ୍ଦେଶ୍ୟେ ଯେଉଁ ଆତ୍ମା କରେ ବଶ,
ତାହାର ହୃଦୟେ ଅଛି ପ୍ରକୃତ ସାହସ ।

ସନ୍ତୋଷର କୁଟୀରରେ ଯେତେ ସୁଖ ମିଳେ,
ଦୁଶ୍ଚିନ୍ତାର ତେତେ ସୁଖ ନୁହେଁ ହର୍ମ୍ୟ ତଳେ ।

ନିଷ୍ପାପ ଥାଇ ପରକେ କଷ୍ଟେ ଢାଳି ହୃଦ,
କଷ୍ଟ ପରିହାର ପାଇଁ କୁକାର୍ଯ୍ୟ ନ କର ।

କେହି କେବେ ପାରେ ନାହିଁ ଯାକୁ ଲଙ୍ଘିବାରେ,
ଅବୋଧର ଯତ୍ନ ସେହି ନଷ୍ଟର ଶକ୍ତିରେ ।

କ୍ଷୁଦ୍ର କର୍ମେ ଅଟିଅଛ ଅଦା ଲାଭବାରେ,
କି କାର୍ଯ୍ୟ କୁମ୍ଭର, କନ୍ଦ, ସୁବର୍ଣ୍ଣର ଦରେ ।

ଦରିଦ୍ରର ନାହିଁ ଧନ ଅଛି ତ ଜୀବନ,
ଦେଶହିତ ଯଜ୍ଞାହୁତି କି ଅଛି ଏସନ ?

ବିବେକ ସତତ ଯାର ଥାଏ ପରସ୍କାର,
ମନରେ ପ୍ରକୃତ ଶାନ୍ତି ସମ୍ଭବେ ତାହାର ।

ଯେ ଜନ ସହଜେ କରେ ବିଶ୍ୱାସ ଅପରେ,
ପଡ଼ିଣ ଧୂର୍ତ୍ତର ଜାଲେ ସେହି ଜନ ମରେ ।

ବିଳମ୍ବରେ କରେ ପଛେ କାର୍ଯ୍ୟ ସମ୍ପାଦନ,
ତଥାପି ଅବସ୍ଥ ତ୍ୟାଗ ନ କରେ ସଜ୍ଜନ ।

ଅତୀତ ଭ୍ରମ ପ୍ରମାଦ କୋହି ବିସ୍ମରଣ,
ଭବିଷ୍ୟତେ ନିରାପଦ ରଖିବ ଜୀବନ ।

ବେଳ ଥାଉ ଥାଉ ଯତ୍ନ କର ପ୍ରତୀକାର,
ଭୀଷଣ ବିପଦେ କେବେ ନୋହିବ କାତର ।

ପରକୃତ ଅପରାଧ କର ବିସ୍ମରଣ,
ନିଜ ମହତ୍ତ୍ୱ ପ୍ରକାଶ କର ଅନୁକ୍ଷଣ ।

ଯେତିକି ଉନ୍ନତ ହୁଏ ଗୌରବ ଯାହାର,
ଦୟାର୍ଦ୍ର କୋମଳ ପ୍ରାଣ ସେତିକି ତାହାର ।

ଧୀରଭାବେ କର କାର୍ଯ୍ୟ ହୋଇ ଅଚଞ୍ଚଳ,
ବପନ ମାତ୍ରକେ ବୀଜ ଧରଇ କି ଫଳ ?

କର୍ମ୍ମବୀର ବାକ୍ୟବ୍ୟୟେ ନ ପାଏ ସମୟ,
ବାକ୍ୟବୀର ବାକ୍ୟ ବ୍ୟୟେ କରେ କାଳ କ୍ଷୟ ।

ଦାନେ, ତପେ, ଶୌର୍ଯ୍ୟେ ଯାର ନ ଘୋଷଇ ମାନ,
ସେ ପୁତ୍ର, ମାତାର ମଳ ମୂତ୍ରର ସମାନ ।

ପୁଞ୍ଜ ପୁଞ୍ଜ ତାରା ଦେଖ ନ ହରେ ଅନ୍ଧାର,
ଏକଚନ୍ଦ୍ର ଆଲୋକିତ କରଇ ସଂସାର ।

ଦୁର୍ଜ୍ଜନ ଯଦ୍ୟପି କହେ ସୁମିଷ୍ଟ ବଚନ,
ତଥାପି ତା ବାକ୍ୟେ ନ ଭୁଲିବ କଦାଚନ ।

ଅର୍ଥନାଶ, ମନସ୍ତାପ, ଗୃହର ଦୂଷଣ,
ପ୍ରତାରଣା, ମାନହାନି କରିବ ଗୋପନ ।

ସାର୍ଥକ ତାହାର ବିଦ୍ୟା ତାହାର ସାଧନା,
ସମ୍ମୁଖେ ବୈରାଗ୍ୟ ଯାର ପଶ୍ଚାତେ କାମନା ।

ନିଜର ମରଣ ଦୁଃଖ କରି ଅନୁମାନ,
ସେହି ଅନୁମାନେ ରକ୍ଷା କର ପର ପ୍ରାଣ ।

ଜ୍ଞାନୋଚିତ ଅନୁଷ୍ଠାନେ ଅଶକ୍ତ ଯେ ଜନ,
ସେ ଜ୍ଞାନ ଥିବାରେ କହ କେଉଁ ପ୍ରୟୋଜନ ?

ଦାନ, ଭୋଗ, ନ କରଣ ଯେ କରେ ସଞ୍ଚୟ,
ଚିନିବହା ବଳଦ ସେ ଜାଣିବ ନିଶ୍ଚୟ ।

ସମସ୍ତଙ୍କ ସୁଖ ଦୁଃଖ ଦେଖ ଏ ସଂସାରେ,
ଘୂରୁଅଛି ଅବିରତ ଚକ୍ରର ଆକାରେ ।

ଯେବେ କରାଇବ ତୁମ୍ଭେ ସାଧୁ ସହବାସ,
ଜାଣିବ ନିଶ୍ଚୟ କଲି ଦଇବେ ନିବାସ ।

ସଫଳ ଜୀବନ ତାର ଯେ ଜନ ସ୍ୱାଧୀନ,
ପରାଧୀନେ ବଞ୍ଚିଥିବା ମରଣ ସମାନ ।

ଯଥାକାଳେ ଯେ ନ କରେ ସେବକ ପାଳନ,
ନୁହଇ ସେ ଜନ ଭୃତ୍ୟସେବାର ଭାଜନ ।

ଗୁଳ୍ମ, ଲତା, ବାତ୍ୟା, ବୃକ୍ଷ କରଇ ବିନାଶ,
ବଡ଼ କରେ ବଡ଼ ପାଖେ ବିକ୍ରମ ପ୍ରକାଶ ।

ଅନେକ ମର୍ଦ୍ଦନ କଲେ ଦେଇ ତୈଳ ଜଳ,
କୁକ୍କୁରର ପୁଚ୍ଛ କେବେ ହୁଏ କି ସରଳ ?

ପାଳନେ, ସମ୍ମାନେ ଦୁଷ୍ଟ ନ ହୁଅଇ ଖଳ,
ବିଷବୃକ୍ଷେ ସୁଧା ସେକେ ଫଳେ କି ଶ୍ରୀଫଳ ?

ଯେ କରେ ଅନିତ୍ୟ ଦେହ ପରହିତେ ଦାନ,
ସାର୍ଥକ ଜୀବନ ତାର ସେହି ପୁଣ୍ୟବାନ ।

ନ କହେ ଯେ ଜନ କେବେ ନିଷ୍ଠୁର ବଚନ,
ଭୁବନେ ତାହାର ଧନ୍ୟ ଜାଣିବ ଜୀବନ ।

ସାଗରେ, ସରିତେ ଯେତେ ଲୋକ ନିମଗନ,
ମଦସାଗରେ ମଗ୍ନସଂଖ୍ୟା ତାର ଶତଗୁଣ ।

ପାପ ଅନୁଷ୍ଠାନେ ବାଧା ନ ଦିଏ ଯେ ଜନ,
ଅଲକ୍ଷରେ କରେ ସେହି ପାପାଂଶ ଗ୍ରହଣ ।

ଜୀବନ ନିଯୁକ୍ତ ଯାର ପରାର୍ଥେ କେବଳ,
ସାଧେ ସେ ଅଜ୍ଞାତସାରେ ଆପଣା ମଙ୍ଗଳ ।

ଶୁଣୁଛ ନରର ଯେଉଁ ପ୍ରଶଂସାର ଗାନ,
ସତ୍ୟ ମିଥ୍ୟା ସାକ୍ଷୀ ତାର ଆପଣାର ପ୍ରାଣ ।

ଛୋଟ ହୋଇ କେତେ ବଡ଼, ଏହାହିଁ ନିୟମ,
ଏହାତେବଳେ ଲକ୍ଷ୍ୟଦାନ ନୁହେ ତାର କମ ।

ପତ୍ର ଅନ୍ତରାଳେ ଲୁଚି ଥାଆନ୍ତି ସୁମନ,
ମଧୁପ ତଥାପି ତାଙ୍କୁ କରେ ଅନ୍ୱେଷଣ ।

କ୍ଷମା କର, ସତ୍ୟ କହ, ପାର ଯେତେ କର,
ଏହାହିଁତ ମାନବୀୟ ବିଜ୍ଞାନର ସାର ।

ଅଜ୍ଞାନ ଥାଇ ପଣ୍ଡିତେ କଟାଇବ କାଳ,
ତଥାପି ତେଜିବ ତ୍ୟାଗ ଲୁଣିଆ-ଜଞ୍ଜାଳ ।

ଶିଶୁର ସାରଲ୍ୟ ଆଉ ଉତ୍ସାହ ଯୁବାର,
ବାର୍ଦ୍ଧକ୍ୟରେ ରହେ ଯାର ଦେବତ୍ୱ ତାହାର ।

କଥାରେ କାର୍ଯ୍ୟରେ କେବେ ମେଳ ନାହିଁ ଯାର,
ସେ ଯଦି ମନୁଷ୍ୟ, କହ, ଜନ୍ତୁ କ ପ୍ରକାର ?

ସତର ଦୁଃଖ୍ୟାତି ଶୁଣି ସେ ହୁଏ କାତର;
ଅସତା ଅଖ୍ୟାତି ଖ୍ୟାତି ଯାର ଜରନ୍ତ୍ରଂ ।

ବୁଡ଼ି ମରୁଅଛ ବୋଲି ବୃଥା କର ରୋଷ,
ସନ୍ତର ନ ଜାଣ ନିଜେ ଜଳର କି ଦୋଷ ?

କୁତ୍ସିତ ସାହିତ୍ୟ ସେବା କରେ ଯେଉଁ ଜନ,
ଅନ୍ତରେ ହୁହୁଲେ ତାର ପାପ-ପ୍ରସ୍ରବଣ ।

କାହାର ଜୀବନେ ନାହିଁ ଏପରି ନିମେଷ,
ଯାର ଅପରାଧେ ଦଣ୍ଡ ନ ହୁଏ ଅଶେଷ ।

ସର୍ବେ କ୍ଷମାଶୀଳ ହେଲେ ଶକ୍ତି ଅନୁସାରେ,
ନଂ ରହିବ ଦୁଃଖ ଲେଶ ଏ ବିଶ୍ୱ ସସାରେ ।

ଚମ୍ପା କଂସା ଓଜନରେ କେ ନୁହେ ପଣ୍ଡିତ ?
କଥାରେ ଓଜନ କେହି ବୁଝେ କଦାଚିତ ।

ଯଶସ୍ୱୀର ଯଶ ଦେଖି ଈର୍ଷା ହୁଏ ତାର,
ନିଶ୍ଚିତ ସମାଜ ଘୋଷେ ଅପଯଶ ଯାର ।

ସମାପ୍ତ ।